# ଆମ ଭିତରେ
# ବାଘ ଲୁଚିଛି





## ଗପଟିଏରୁ ଆରମ୍ଭ କରିବା

ଗାଈଆଳ ପିଲାଟିଏ। 'ମତେ ବାଘ ଖାଇଗଲା' ବୋଲି ସବୁଦିନ ପାଟି କରେ। ଲୋକେ ଜମା ହୁଅନ୍ତି। ଗାଈଆଳ ପିଲାଟି ଗଛ ଉପରେ ବସି ମଜା ଦେଖେ। ଆରେ, ମିଛୁଆଟାରେ! ଲୋକେ ଫେରିଯା'ନ୍ତି। ସତକୁ ସତ ଦିନେ ବାଘ ଆସିଲା। ପିଲାଟି ବହୁତ ଡାକ ପକାଇଲା। ସେ ଦିନ କିନ୍ତୁ କେହି ଆସିଲେ ନାହିଁ। ବାଘ ପିଲାଟିକୁ ଖାଇଦେଲା।

ଏଇଟିକୁ 'ମିଛୁଆ ରାଧୁଆ' ଗପ ଭାବରେ ଆମେ ସମସ୍ତେ ଜାଣିଛୁ।

ଏଇ ଦଶ ପନ୍ଦର ବର୍ଷ ହେବେ ଚାରିଆଡେ ହୁରି ପଡିଛି ଯେ, ଆମେ ବାସ କରୁଥିବା ପୃଥିବୀର ପରିବେଶ ପାଇଁ ଖୁବ୍ ଗୋଟିଏ ଖରାପ ସମୟ ଆସୁଛି-ପୃଥିବୀର ଉତ୍ତାପ ବଢ଼ିଯିବ, ଚାରିଆଡେ ମରୁଭୂମି ହୋଇଯିବ, ସମୁଦ୍ର ମାଡି ଆସିବ, ନିଶ୍ୱାସ ନେବାକୁ ପବନ ଟିକିଏ ମିଳିବ ନାହିଁ; ଏଇ ଭଳି ଅନେକ କଥା। ମିଛୁଆ ରାଧୁଆ ଗପ ପରି ମଜା ଦେଖିବା ଲାଗି, କେବଳ ଗୋଟେ ହଇଚଇ ପାଇଁ ଏମିତି ପ୍ରଚାର ଚାଲିଛି, ନାଁ ଆମ ଅଲକ୍ଷରେ କେଉଁଠି ଗୋଟାଏ ବାଘ

ଛକି ବସିଛି, ବେଳ କାଳ ଦେଖି କୁଦି ପଡିବ। ପରିବେଶ କ'ଣ, ଏହା କିଭଳି ଅବସ୍ଥାରେ ପହଞ୍ଚିଛି ଏସବୁ ନଜାଣିଲେ ଆମେ ଏ ବିଷୟରେ କିଛି ସଠିକ ନିର୍ଣ୍ଣୟ ନେଇ ପାରିବା ନାହିଁ।

## ପରିବେଶ କ'ଣ ?

ପରିବେଶ କହିଲେ ଆମ ଚାରିପଟକୁ ପରିବେଷ୍ଟନ କରିରହିଥିବା ନିର୍ଜୀବ ଓ ସଜୀବ ସମ୍ପ୍ରଦାୟର ଅଙ୍ଗାଙ୍ଗୀ ସମାବେଶର ସମାହାରକୁ ବୁଝାଇଥାଏ। ମାଟି, ପାଣି, ପବନ ପରି ଅଜୈବ ବସ୍ତୁ ଓ ପ୍ରାୟ ୧୫ ଲକ୍ଷ ଜାତିର ଉଦ୍ଭିଦ ଓ ପ୍ରାଣୀଙ୍କର ପାରସ୍ପରିକ ସମ୍ପର୍କକୁ ଆଧାର କରି ଆମ ପରିବେଶ ଗଠିତ ହୋଇଛି। ଆମର ଏହି ପରିବେଶକୁ ଆମେ ତିନି ଭାଗରେ ବିଭକ୍ତ କରିପାରିବା। ଯଥା :-

- ମାଟି, ପାଣି, ବାୟୁ ପ୍ରଭୃତି ନିର୍ଜୀବ ଅଂଶକୁ ନେଇ ଭୌତିକ ପରିବେଶ;
- ଗଛଲତା, ସାନବଡ ସମସ୍ତ ପ୍ରାଣୀ, ପଶୁପକ୍ଷୀ ଆଦିକୁ ନେଇ ଜୈବିକ ପରିବେଶ;
- ଓ ମଣିଷ, ପରିବାର, ଗାଁ ଗଣ୍ଡା, ସହର ବଜାର, କୃଷି, ଶିଳ୍ପ, ବାଣିଜ୍ୟ, ଗମନାଗମନ ଓ ସାମାଜିକ, ରାଜନୈତିକ ଆର୍ଥିକ କାର୍ଯ୍ୟକଳାପକୁ ନେଇ ମାନବୀୟ ପରିବେଶ।

ମୋଟା ମୋଟି ଭାବେ କହିବାକୁ ଗଲେ, ଉପରେ ଥିବା ଫସଲ ଅମଳଯୋଗ୍ୟ କେତେ ମିଟର ମାଟି, କେତେ କିଲୋମିଟରର ଜୀବନ ଧାରୀ ବାୟୁ ମଣ୍ଡଳ ଓ ଜଳଚକ୍ର, ଏଇ ହେଲା ଆମ ବଞ୍ଚିବାର ମୂଳ ଆଧାର।

ପ୍ରାୟ ୩୦୦ କୋଟି ବର୍ଷର ପରିବର୍ତ୍ତନ, ବିଘଟନ ମଧ୍ୟ ଦେଇ ପୃଥିବୀରେ ଆମର ବଞ୍ଚିବା ଓ ସୁଖ ସ୍ୱାଚ୍ଛନ୍ଦ୍ୟର ସମସ୍ତ ଜିନିଷ ତିଆରି ହୋଇଛି। ଏ ସବୁ ଏପରି ଏକ ଛନ୍ଦରେ ବନ୍ଧା ହୋଇଛି ଯେ, ଟିକିଏ ଏପଟ ସେପଟ ହେଲେ ସବୁ ଗଣ୍ଡଗୋଳିଆ ଧରିବ।

ହେଲେ ଉନ୍ନତି ଓ ଆଧୁନିକତା ନାମରେ ମଣିଷ ପ୍ରକୃତିକୁ ଏଭଳି ଲଗାମହୀନ ଭାବେ ବ୍ୟବହାର କରି ଆସିଲା ଯେ, ପ୍ରାୟ ୧୫,୦୦୦ ବର୍ଷର ଇତିହାସ ପରେ ଆଜି ଅନୁଭବ କରୁଛି - ନିଜକୁ ବଞ୍ଚାଇରଖି ପ୍ରକୃତିକୁ ଧ୍ୱଂସ କରିବା ସମ୍ଭବ ନୁହେଁ।

## ପରିବେଶ ଜନିତ ମୁଖ୍ୟ ସମସ୍ୟାଗୁଡ଼ିକ କ'ଣ ?

ପରିବେଶ ଆଜି ସାରା ବିଶ୍ୱର ସବୁଠାରୁ ବଡ଼ ସମସ୍ୟା, ଯାହା କି ମଣିଷ ସମାଜର ଭବିଷ୍ୟତର ଅନିଶ୍ଚିତତାର କାରଣ ହୋଇଛି। ବର୍ତ୍ତମାନର ବିକାଶ ପ୍ରକ୍ରିୟା ଯେ ଏହି ଜୀବ ଜଗତର ଧ୍ୱଂସର କାରଣ ହେବ, କେବଳ ତାହା ନୁହେଁ, ଏ ପ୍ରକ୍ରିୟା ମଧ୍ୟ ବେଶିଦିନ ଚାଲିପାରିବ ନାହିଁ, ତାହା ମଧ୍ୟ ସମସ୍ତେ ଅନୁଭବ କରିବା ଆରମ୍ଭ କଲେଣି। ଏହି ସମସ୍ୟା ଗୁଡ଼ିକୁ ମୁଖ୍ୟତଃ ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇ ପାରେ :

(କ) ବିଶ୍ୱସ୍ତରୀୟ ଯଥା ବାୟୁମଣ୍ଡଳର ଉଷ୍ଣତା ବୃଦ୍ଧି, ପାଣିପାଗର ପରିବର୍ତ୍ତନ, ସମୁଦ୍ରର ଜଳପତନ ବୃଦ୍ଧି, ଓଜୋନ ସ୍ତରରେ ହ୍ରାସ, ଦକ୍ଷିଣ ଓ ଉତ୍ତର ମେରୁର ଜୀବମଣ୍ଡଳର ସୁରକ୍ଷା, ହିମାଳୟ ଭଳି ବଡ଼ବଡ଼ ପରିବେଶର ଉପଯୁକ୍ତ ପରିଚାଳନା, ଅଣୁ ଓ ରାସାୟନିକ ଅସ୍ତ୍ରଶସ୍ତ୍ର ପ୍ରସାରଣର ବିରୋଧ ଇତ୍ୟାଦି।

(ଖ) କଳ କାରଖାନା ପୂର୍ଣ୍ଣ ବିକାଶଶୀଳ ଦେଶ ମାନଙ୍କରେ ଅତ୍ୟଧିକ ବାୟୁ ଓ ଜଳ ପ୍ରଦୂଷଣ, ଅମ୍ଳ ବର୍ଷା, କଳ କାରଖାନାରୁ ବାହାରୁଥିବା ଆବର୍ଜନା ଓ ବ୍ୟବହାର କରି ଫିଙ୍ଗି ଦେଉଥିବା ସାମଗ୍ରୀକୁ ପୁନଃ ବ୍ୟବହାର କରିବା କିମ୍ବା ପକାଇବା ପାଇଁ



ସ୍ଥାନାଭାବ ଇତ୍ୟାଦି ।

(ଗ) ମାତ୍ର, ପରିବେଶ କ୍ଷୟଯୋଗୁଁ ବେଶୀ କ୍ଷତିଗ୍ରସ୍ତ ହେଉଥିବା ବିକାଶୋନ୍ମୁଖୀ ଦେଶ ମାନଙ୍କରେ ଏହା ଅନାହାର ମୃତ୍ୟୁ, ଓ ବଞ୍ଚିବାର ଅଧିକାର ପ୍ରଶ୍ନ । ଏଠି ପ୍ରାକୃତିକ ସମ୍ପଦ କୋଟି କୋଟି ଲୋକଙ୍କର ବଞ୍ଚିବାର ଆଧାର । ମାତ୍ର, ବନ୍ୟା, ମରୁଡ଼ି, ମରୁଭୂମି ସୃଷ୍ଟି ଆଦି ସମସ୍ୟାମାନ ଏହି ଦେଶମାନଙ୍କର ଆର୍ଥିକ ଓ ସାମାଜିକ ସ୍ଥିତିକୁ ବହୁତ ଭାବରେ ଦୁର୍ବଳ କରିଦେଉଛି ।

## ପୃଥିବୀର ଉତ୍ତାପ ବୃଦ୍ଧି - ଆଜିର ମୁଖ୍ୟ ସମସ୍ୟା

ପୃଥିବୀର ଉଷ୍ଣତା ବୃଦ୍ଧି ଆଜି କେବଳ ତୃତୀୟ ବିଶ୍ୱରେ ନୁହେଁ, ସାରା ବିଶ୍ୱରେ ଏକ ବିରାଟ ସମସ୍ୟା । ଯଦି ଏହା ଏହିଭଳି ଭାବରେ ବୃଦ୍ଧି ପାଇବାରେ ଲାଗେ, ତେବେ ଆମକୁ ଭୟଙ୍କର ସମସ୍ୟା ମାନର ସମ୍ମୁଖୀନ ହେବାକୁ ପଡ଼ିବ । ପୃଥିବୀର ଉତ୍ତାପ ବୃଦ୍ଧି ପାଇଁ କଳ କାରଖାନା ଓ ମୋଟର ଚାଳିତ ଯାନ ବାହନରୁ ନିର୍ଗତ ହେଉଥିବା କାର୍ବନ ଡାଇଅକ୍ସାଇଡ୍ ଶତକଡ଼ା ୫୦ ଭାଗ ଦାୟୀ । ସି. ଏଫ୍. ସି. (କ୍ଲୋରୋଫ୍ଲୋରୋ କାର୍ବନ) ଗ୍ୟାସ ପ୍ରାୟ ଶତକଡ଼ା ୨୦ ଭାଗ ଦାୟୀ ହୋଇଥିଲା ବେଳେ ଧାନଚାଷ ଓ ପଶୁମାନେ ଛାଡ଼ୁଥିବା ମିଥେନ୍ ଗ୍ୟାସ ଶତକଡ଼ା ୧୪ ଭାଗ ଦାୟୀ । ସି.ଏଫ୍.ସି. ଗ୍ୟାସ ସାଧାରଣତଃ ରେଫ୍ରିଜେରେଟର ଭଳି ଶୀତଳୀକରଣ ଯନ୍ତ୍ର, ନିଆଁ ଲିଭାଇବା ଯନ୍ତ୍ର ଆଦିରେ ବ୍ୟବହାର ହୋଇଥାଏ, ଯାହା ସେଥିରୁ ଯାଇ ବାୟୁ ମଣ୍ଡଳରେ ମିଶେ ।

ଆଉ ଏକ ଜାଣିବାର ବିଷୟ ହେଉଛି ଯେ, ଯେଉଁ କାର୍ବନ ଡାଇଅକ୍ସାଇଡ୍ ବାୟୁମଣ୍ଡଳରେ ରହେ ତାହା ୧୦୦ ବର୍ଷ ପର୍ଯ୍ୟନ୍ତ ନଷ୍ଟ ହୁଏ ନାହିଁ । ସେହିପରି ମିଥେନ ଗ୍ୟାସ ୧୦ ବର୍ଷ

ପରେ ନଷ୍ଟ ହୋଇଯାଉଥିଲା ବେଳେ, ସି.ଏଫ୍.ସି. ଗ୍ୟାସ ଆଦୌ ନଷ୍ଟ ହୁଏ ନାହିଁ। ଏହି ପ୍ରକ୍ରିୟା ଫଳରେ ପୃଥିବୀର ଉଷ୍ଣତା ବୃଦ୍ଧି ପାଏ। ଏହି ପ୍ରକ୍ରିୟାକୁ 'ସବୁଜ ଗୃହ ପ୍ରଭାବ' ବୋଲି କୁହାଯାଉଛି। କାଚ କିମ୍ବା ପଲିଥିନ ଦ୍ୱାରା ଆବଦ୍ଧ ସ୍ଥାନରେ ଗଛଲତା ବଢ଼ାଇବା ପ୍ରଣାଳୀକୁ 'ସବୁଜ ଗୃହ ପ୍ରଣାଳୀ' କୁହାଯାଏ। ଯାହା ଆବଦ୍ଧ ସ୍ଥାନକୁ ଉଷ୍ମ ରଖିବାରେ ସାହାଯ୍ୟ କରେ। ଆଗରେ କୁହାଯାଇଥିବା ଗ୍ୟାସ ଗୁଡ଼ିକ ବାୟୁମଣ୍ଡଳର ଉପରି ଭାଗରେ ଜମା ହୋଇ ପୃଥିବୀ ପୃଷ୍ଠରୁ ଉପରକୁ ବିକିରୀତ ଉତ୍ତାପକୁ ଧରି ରଖି ପୁଣି ପୃଥିବୀକୁ ପଠାଇ ଦିଏ। ଯାହା ଫଳରେ ପୃଥିବୀର ଉତ୍ତାପ ବୃଦ୍ଧି ପାଇବାର ସମ୍ଭାବନା ଦେଖା ଦେଇଛି। ଯଦି ଏହି ପ୍ରକ୍ରିୟା ଚାଲୁ ରହେ, ତେବେ ଆଗାମୀ ୩୦ ବର୍ଷ ମଧ୍ୟରେ ପୃଥିବୀର ଉତ୍ତାପ ୩.୫ ଡିଗ୍ରୀ ସେଲସିୟସକୁ ବୃଦ୍ଧି ପାଇବ ବୋଲି ବୈଜ୍ଞାନିକମାନେ କୁହନ୍ତି। ପୃଥିବୀର ଉଷ୍ଣତା ବୃଦ୍ଧି ପାଇଲେ ମେରୁ ଅଞ୍ଚଳର ବରଫ ତରଳି ସମୁଦ୍ରର ଜଳପତନ ବୃଦ୍ଧି ପାଇବ ଓ ସମୁଦ୍ର ଉପକୂଳବର୍ତ୍ତୀ ଅଞ୍ଚଳର ଜନବସତି ଜଳରେ ବୁଡ଼ିଯିବ। ମାଳଦ୍ୱୀପ ଭଳି ଦେଶ ସମ୍ପୂର୍ଣ୍ଣଭାବେ ଜଳରେ ବୁଡ଼ିଯିବା ବେଳେ ଏକ ମିଟର ଜଳପତନ ବୃଦ୍ଧିରେ ବଙ୍ଗଳା ଦେଶର ଶତକଡ଼ା ୧୭ ଭାଗ ଜଳରେ ବୁଡ଼ିଯିବ। ଓଡ଼ିଶାର ଉପକୂଳବର୍ତ୍ତୀ ଅଞ୍ଚଳ ମଧ୍ୟ ଏହି ପ୍ରକାର ପ୍ରଭାବରୁ ମୁକ୍ତ ନୁହେଁ। ଆହୁରି ମଧ୍ୟ ପାଣିପାଗରେ ବିଶେଷ ପରିବର୍ତ୍ତନ ଘଟିବ। ଫଳରେ, ଅନେକ ଅଞ୍ଚଳ ମରୁଭୂମିରେ ପରିଣତ ହୋଇଯିବ। ଉତ୍ତାପ ବୃଦ୍ଧି ଯୋଗୁଁ ପ୍ରାକୃତିକ ଜୈବ ପରିବେଶ ନଷ୍ଟ ହୋଇ ମହାମାରୀ ଆଦି ରୋଗ ବ୍ୟାପିବ। ପିଇବା ପାଣି ମଧ୍ୟ ମିଳିବ ନାହିଁ।

## ଓଜୋନ ସ୍ତରରେ ହ୍ରାସ: ଆଉ ଏକ ସତର୍କ ଘଣ୍ଟି

ପୃଥିବୀ ଉପରୁ ପନ୍ଦରରୁ ପଞ୍ଚାବନ କିଲୋମିଟର ଭିତରେ ରହିଛି 'ଓଜୋନ' ସ୍ତର। ସୂର୍ଯ୍ୟରୁ ଆସୁଥିବା ଅତି ବାଇଗଣୀ-ରଶ୍ମି ଏହା ଭିତରେ ଦେଇ ଆସୁଥିବା ଯୋଗୁଁ ଆମ ଉପରେ ଏହାର ଖରାପ ପ୍ରଭାବ ପଡ଼େ ନାହିଁ। ହେଲେ, ଏହି 'ଓଜୋନ' ସ୍ତର କଳକାରଖାନାରୁ ନିର୍ଗତ; ବିଶେଷ କରି କ୍ଲୋରୋଫ୍ଲୋରୋ କାର୍ବନ (ସଂକ୍ଷେପରେ ସି.ଏଫ୍.ସି) ନାମକ ଏକ ଗ୍ୟାସ୍ ଯୋଗୁଁ ହ୍ରାସ ହେବାରେ ଲାଗିଛି।

ଏହି ସି.ଏଫ୍.ସି, ଗ୍ୟାସ କୁ 'ଫ୍ରିଜ୍' ଭଳି ଅନ୍ୟାନ୍ୟ ଶୀତଳିକରଣ ଯନ୍ତ୍ର, ନିଆଁ ଲିଭାଇବା ତଥା ଅନ୍ୟାନ୍ୟ ସୌଖିନ ସାମଗ୍ରୀ ଇତ୍ୟାଦି ତିଆରିରେ ବ୍ୟବହାର କରାଯାଏ। ଗୋଟିଏ ରୁମାଲ ସ୍ପ୍ରେ' ରେ ଧରୁଥିବା ଶହେ ଗ୍ରାମ ସି.ଏଫ୍.ସି. ତିନି ଦଶମିକ ପାଞ୍ଚଟନ ଓଜନର 'ଓଜୋନ' ନଷ୍ଟ କରି ଦେଇପାରେ। ଅଥଚ ଆମେ ପ୍ରତିଦିନ ଏକ ନିୟୁତରୁ ଅଧିକ ଟନ୍ ସି.ଏଫ୍.ସି ବାୟୁ ମଣ୍ଡଳକୁ ଛାଡୁଛୁ। ଯଦି ଏହିଭଳି ପରିସ୍ଥିତି ରୁହେ, ତେବେ, ଆସନ୍ତା ପଚାଶ ବର୍ଷ ଭିତରେ ଶତକଡା କୋଡ଼ିଏ, ଭାଗ 'ଓଜୋନ' ସ୍ତର କମିଯିବ।

ବର୍ତ୍ତମାନ ଉତ୍ତର ଓ ଦକ୍ଷିଣ ମେରୁ ଅଞ୍ଚଳରେ 'ଓଜୋନ' ସ୍ତରରେ ଯେଉଁ ଗର୍ତ୍ତ ସୃଷ୍ଟି ହୋଇଛି ତାହା ଅନ୍ୟ ଅଞ୍ଚଳକୁ ବ୍ୟାପିଲେ 'ମେଲୋନାମା' ଭଳି ଭୟଙ୍କର ଚର୍ମ କର୍କଟ ରୋଗ ସୃଷ୍ଟି କରିବ; ଦୃଷ୍ଟିଶକ୍ତି ନଷ୍ଟ ହୋଇଯିବ ଏବଂ ଗଛଲତା ମଧ୍ୟ ବଢ଼ିବେ ନାହିଁ।

## ଆକାଶରେ ଅଳିଆ, ମାଟିରେ ଏସିଡ୍

ଏହି ଶହେ ବର୍ଷ ଭିତରେ ପୃଥିବୀ ସାରା ଅଂସଖ୍ୟ କଳକାରଖାନା ସ୍ଥାପନ ଫଳରେ ବାୟୁ ମଣ୍ଡଳ ଦୂଷିତ ହେବାରେ ଲାଗିଛି। ବିଶେଷଜ୍ଞମାନଙ୍କ ମତରେ ପ୍ରତିବର୍ଷ ପୃଥିବୀ ୧୨କୋଟି ଟନ୍ ପାଉଁଶ,

ପାଞ୍ଚକୋଟି ଟନ୍‌ରୁ ଅଧିକ ପରିମାଣର ବିଭିନ୍ନ ପ୍ରକାର ହାଇଡ୍ରୋକାର୍ବନ୍ ୧୫କୋଟି ଟନ୍ ଗନ୍ଧକ ସଲଫର ଡ଼ାଇ ଅକ୍ସାଇଡ୍, କୋଡ଼ିଏ କୋଟି ଟନରୁ ଅଧିକ କାର୍ବନ ଡ଼ାଇଅକ୍ସାଇଡ୍ ବାୟୁ ମଣ୍ଡଳରେ ମିଶାଉଛି।

ଏକ ହିସାବରୁ ଜଣାଯାଇଛିଯେ, ପୃଥିବୀରେ ବର୍ତ୍ତମାନ ୬୦କୋଟି ଗାଡି ଯାତାୟାତ ହେଉଛି। ଚଳିତ ଶତାବ୍ଦୀ ଶେଷ ବେଳକୁ ଏହାର ପରିମାଣ ଦୁଇଗୁଣ ହୋଇଯିବ। ମଟରଗାଡି ମାନଙ୍କରୁ ବାହାରୁଥିବା ଧୂଆଁରେ ରହିଛି ସୀସା, କାର୍ବନ୍‌ମନୋଅକ୍ସାଇଡ୍, ନାଇଟ୍ରୋଜେନ ଡ଼ାଇଅକ୍ସାଇଡ୍ ଓ ସଲଫର ଡ଼ାଇଅକ୍ସାଇଡ୍ ଭଳି ବିଷାକ୍ତ ବାୟୁ ପ୍ରଦୂଷଣକାରୀ ପଦାର୍ଥ ସବୁ। ବିଶ୍ୱବ୍ୟାଙ୍କର ଏକ ସମୀକ୍ଷାରୁ ପ୍ରକାଶ ଯେ, ବିହିତ ପଦକ୍ଷେପ ନିଆନଗଲେ ଶତାବ୍ଦୀ ଶେଷ ବେଳକୁ ପ୍ରାୟ ଚାଳିଶ କୋଟି ସହରବାସୀ ଭୟଙ୍କର ବାୟୁ ପ୍ରଦୂଷଣର ଶୀକାର ହେବେ। ବାୟୁ ବାହିତ ଦୂଷିତ ପଦାର୍ଥ ରେ ସଲଫର୍ ଓ ନାଇଟ୍ରୋଜେନ ଅକ୍ସାଇଡ୍ ପରିମାଣ ଅଧିକ ବୃଦ୍ଧି ପାଇଲେ ଏହା ବର୍ଷା ଜଳରେ ଦ୍ରବୀଭୂତ ହୋଇଯାଏ ଏବଂ ଏକ ତରଳ ଅମ୍ଳ ଦ୍ରବଣରେ ପରିଣତ ହୁଏ। ଏହା ବର୍ଷା ସହିତ ପଡ଼ିଲେ ଆମେ ଅମ୍ଳ ବୃଷ୍ଟି ବା 'ଏସିଡ୍' ବର୍ଷା ବୋଲି କହିଥାଉ। ଏହା ଜଂଗଲ ଧ୍ୱଂସର କାରଣ ହୁଏ ଓ କୋଠାବାଡ଼ି କଳକାରଖାନା ଆଦିକୁ ଧିରେ ଧିରେ ଧ୍ୱଂସ ମୁଖକୁ ଟାଣିନିଏ।

## ମା' କ୍ଷୀରରେ ବିଷ

କେହି କେହି ଆଧୁନିକ ସଭ୍ୟତାକୁ 'ଅଳିଆ ଆବର୍ଜନାର ଉତ୍ପାଦକ' ବୋଲି ଅଭିହିତ କଲେଣି। କଳକାରଖାନା, ଅସ୍ତ୍ରଅସ୍ତ୍ର ପରୀକ୍ଷା ଆଦିରୁ ବାହାରୁ ଥିବା ବିଷାକ୍ତ ଆବର୍ଜନା, ସହରର ନାଳ ନର୍ଦ୍ଦମା ମାନଙ୍କରୁ ନିଷ୍କାସିତ ଦୂଷିତ ପଦାର୍ଥ ସବୁ ଏବେ ମାଟି, ପାଣି ପ୍ରଭୃତିକୁ ଦୂଷିତ କରିଦେଲାଣି। ଏହା ଫଳରେ ନିଜ ଅଜାଣତରେ ଲକ୍ଷଲକ୍ଷ ଲୋକ ରୋଗର ଶୀକାର ହେଉଛନ୍ତି ଓ କ୍ରମଶଃ ମରଣ ମୁହଁକୁ ଠେଲିହୋଇ ଯାଉଛନ୍ତି।

ପୃଥିବୀର ବିଭିନ୍ନ ଅଞ୍ଚଳରେ ପ୍ରାୟ ସତୁରୀ ହଜାର ପ୍ରକାର ରାସାୟନିକ ପଦାର୍ଥ ତିଆରି ଓ ବ୍ୟବହାର ହେଉଛି। ଏହା ଭିତରେ ରହିଛି କୃଷି ଉତ୍ପାଦନ ପାଇଁ ବ୍ୟବହୃତ ହେଉଥିବା ରାସାୟନିକ ସାର ଓ ଔଷଧ। ସବୁ ଶେଷରେ ଏ ସମସ୍ତ ନଦୀ ନାଳ ବାଟଦେଇ ଜଳରେ ମିଶୁଛି। କେବଳ ଡ଼ି.ଡ଼ି.ଟି.ର ହିସାବ ଦେଖିଲେ, ପ୍ରାୟ ଦୁଇଶହ କୋଟି ପାଉଣ୍ଡ ର ଡ଼ି.ଡ଼ି.ଟି ପ୍ରତିବର୍ଷ ବ୍ୟବହାର କରାଯାଉଛି। ଏ ସମସ୍ତ ପୁଣି ଖାଦ୍ୟ ପ୍ରକ୍ରିୟାରେ ମଣିଷ ଦେହକୁ ଫେରି ଆସୁଛି। ଅବସ୍ଥା ଏପରି ହେଲାଣି ଯେ ମା'ର କ୍ଷୀର ରେ ଓ ଅଣ୍ଡାରେ ମଧ ଡ଼ି.ଡ଼ି.ଟି. ଅଂଶ ରହୁଥିବାର ପ୍ରମାଣ ମିଳୁଛି। ଏହା ଫଳରେ ପ୍ରାଣୀ ଜଗତର ପ୍ରଜନନ କ୍ଷମତା ହ୍ରାସ ପାଇବ ବୋଲି ବିଜ୍ଞାନୀମାନେ କହୁଛନ୍ତି।

## ପାଣି ସଙ୍ଗେ ଗେଲ !

ପୃଥିବୀ ପୃଷ୍ଠରେ ଥିବା ପାଣିର ଶତକଡ଼ା ୯୭ଭାଗ ସମୁଦ୍ରଙ୍କର। ଆଉ ଯେଉଁମାତ୍ର ଶତକଡ଼ା ୩ ଭାଗ ମଧୁର ଜଳ ରହିଲା ତହିଁରୁ ବେଶୀଭାଗ ରହିଛି ମେରୁ ଅଞ୍ଚଳରେ ବରଫ ହୋଇ। ଚିନ୍ତା କରନ୍ତୁ, ଆମମାନଙ୍କ ବ୍ୟବହାର ପାଇଁ କେତେଭାଗ ରହିଲା ! ହେଲେ ଆମେ ବେପରୁଆ ହୋଇ ଏହାକୁ ଦୂଷିତ କରିବାରେ ଲାଗିଛୁ। ଉପରେ କୁହାଯାଇଥିବା କଳକାରଖାନାର ଆବର୍ଜନା ଆଦି ସହ ପରମାଣୁ ଅସ୍ତ୍ର ଆଦିର ତେଜସ୍କ୍ରିୟ ଆବର୍ଜନା ମିଶିବା ଯୋଗୁଁ ଅନେକ ନଦୀ ଓ ସମୁଦ୍ରର ଜଳଆଜି ମଣିଷ, ପଶୁପକ୍ଷୀ, ମାଛ ଆଦିଙ୍କର ବଞ୍ଚିବା ଉପଯୋଗୀ ହୋଇରହିନାହିଁ।

## ...ଖ୍‌କୁ ସୁନ୍ଦର ହେଲେ...

କିଛିବର୍ଷ ପୂର୍ବେ ଘରକୁ ସୁନ୍ଦରିଆ ରଙ୍ଗ ବେରଙ୍ଗ ପ୍ଲାଷ୍ଟିକ୍ ବ୍ୟାଗ୍‌ଟିଏ ଆସିଲେ ଆମେ ସାଇତି ରଖୁଥିଲୁ। ଏବେ ମାଛ ମାଂସଠାରୁ ଆରମ୍ଭ କରି ଲୁଗାପଟା ଏପରିକି କ୍ଷୀର ମଧ୍ୟ ପ୍ଲାଷ୍ଟିକ୍ ବ୍ୟାଗ୍‌ରେ। ହେଲେ, ଏହି ପ୍ଲାଷ୍ଟିକ୍ ଆବର୍ଜନାରୁ ମୁକ୍ତି ପାଇବା ଆମପାଇଁ ଏକ ଗୁରୁତ୍ୱର ସମସ୍ୟା। କାରଣ ଏହା ଦୁଇଶହ ବର୍ଷ ଯାଏଁ ସେହିପରି ଅଜର ଅବସ୍ଥାରେ ରହିପାରେ। ଅଧିକ ପରିମାଣ ପ୍ଲାଷ୍ଟିକ୍ ଆବର୍ଜନା ମାଟିରେ ମିଶିଲେ ମାଟିରେ ପବନ ଓ ବ୍ୟାକ୍‌ଟେରିଆମାନଙ୍କ ଯିବାଆସିବା ବନ୍ଦ କରେ, ଫଳରେ ମାଟି ତାର ଉର୍ବରତା ହରାଏ।

## ରଖିଥୋଇ ଜାଣିଲେ...

ଅଳ୍ପ ଜିନିଷ, ହେଲେ ବହୁତ ଦରକାର। ଏଭଳି ଅବସ୍ଥାରେ ତାକୁ ରଖିଥୋଇ ବ୍ୟବହାର ନକଲେ ଆମେ ଅସୁବିଧାରେ ପଡୁ। ଆପଣ ଜାଣନ୍ତିକି, ଆମେ ଯାହାଲାଗି ଜୀବନ ଧରି ବଞ୍ଚିରହିଛୁ ସେହି ଚାଷଯୋଗ୍ୟ ମାଟି ଭୂପୃଷ୍ଠର ଶତକଡ଼ା ମାତ୍ର ୧୦ଭାଗ। ହେଲେ ଆମେ ଅବିଚାରିତ ଭାବେ ଜଂଗଲ କାଟିବା ଯୋଗୁଁ ଉର୍ବର ମାଟି ଧୋଇ ଯାଉଛି ନଦୀ ସମୁଦ୍ରକୁ। ମୃର୍ତ୍ତିକା କ୍ଷୟ ଓ ଅନ୍ୟାନ୍ୟ କାରଣ ଯୋଗୁଁ ପୃଥିବୀରେ ୬୦ରୁ ୭୦ଲକ୍ଷ ହେକ୍ଟର ଜମି ମରୁଭୂମିରେ ପରିଣତ ହେଉଛି। ପ୍ରତିମିନିଟିରେ ୪୪ ହେକ୍ଟର ଜମି ବାଲିଚର ହୋଇଯାଉଛି।

ମାଟି, ପାଣି ଭଳି ପବନ ମଧ୍ୟ ଆମର ଜୀବନ ଧାରଣ ପାଇଁ ନିହାତି ଜରୁରୀ। ହେଲେ



ଆମର ଜଳ ଯୋଗୁଁ ତାହା ମଧ୍ୟ ଅନେକ ସ୍ଥାନରେ ଆଉ ମଣିଷର ବ୍ୟବହାର ଉପଯୋଗୀ ହୋଇ ରହିନାହିଁ।

ବାୟୁର ଏକ ହଜାର ଭାଗରୁ ତିନି ଭାଗ ଅଙ୍ଗାରକାମ୍ଳ ବାଷ୍ପ ରହିବା କଥା। ଗତ ୧୦୦ ବର୍ଷ ଭିତରେ ବାୟୁରେ ଏହି ଅଙ୍ଗାରକାମ୍ଳ ପରିମାଣ ପ୍ରାୟ ଦେଢ଼ଗୁଣ ବଢ଼ିଛି, ଅର୍ଥାତ୍ ହଜାରେ ଭାଗରୁ ସାଢ଼େଚାରିଭାଗ ହୋଇଛି।

ନୀଳକଣ୍ଠ ଭଳି ବାୟୁମଣ୍ଡଳରୁ ବିଷାକ୍ତ ବାଷ୍ପ ସବୁ ଯେଉଁ ଗଛ ଲତା ଶୋଷି ନେଉଥିଲେ, ସେମାନଙ୍କ ସଂଖ୍ୟା ଏତେ ଶୀଘ୍ର କମିବାରେ ଲାଗିଛି ଯେ, ଏହା ବନ୍ଦ ନହେଲେ ପୃଥିବୀ ନିକଟ ଭବିଷ୍ୟତରେ ଧ୍ୱଂସ ପାଇଯିବା ଆଦୌ ବିଚିତ୍ର ନୁହେଁ।

ବାୟୁ ମଣ୍ଡଳରେ ହଜାରେ ଭାଗରୁ ତିନିଭାଗ ଅଙ୍ଗାରକାମ୍ଳ ବାଷ୍ପ ରହିଲା ପରି ମୋଟ ସ୍ଥଳ ଭାଗର ଏକ ତୃତୀୟାଂଶ ଗଛଲତା ପରିପୂର୍ଣ୍ଣ ଜଂଗଲ ରହିବା କଥା। ହେଲେ ପ୍ରତି ମିନିଟ୍‌ରେ ପ୍ରାୟ ୫୦ ହେକ୍ଟର ଜଂଗଲ ଧ୍ୱଂସ ହେଉଛି ଓ ଗତ ୨୫ବର୍ଷ ଭିତରେ ପୃଥିବୀର ବଣ ଜଂଗଲରୁ ୧୨ଶତାଂଶରୁ ଅଧିକ ଲୋପ ହୋଇଯାଇଛି।

## ଅନେକ ଲୋକ ଯହିଁ ମିଳି...

ଗୋଟିଏ ଛୋଟିଆ ଜାଗାରେ ବହୁତ ଲୋକ ରହିଲେ ଯେଉଁ ସବୁ ଅସୁବିଧା ଦେଖାଦିଏ, ପୃଥିବୀର ଅବସ୍ଥା ଠିକ୍ ସେମିତି ହେବାକୁ ଯାଉଛି। ପରିବେଶକୁ ସୁସ୍ଥ ରଖିବା ପାଇଁ ଜନସଂଖ୍ୟା ବୃଦ୍ଧି ରୋକିବା ଉପରେ ଯଥେଷ୍ଟ ଗୁରୁତ୍ୱ ଦିଆଯାଉଛି। ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ହିସାବରୁ ଜଣାଯାଇଛି ଯେ, ପୃଥିବୀର ୫୦କୋଟି ଲୋକଙ୍କୁ ନିହାତି ଗରିବ ହିସାବରେ ଗଣାଯାଇପାରେ। ଏମାନେ ସନ୍ତସନ୍ତିଆ ସହରତଳି ଅଞ୍ଚଳ, ଗିଡ଼ୁଂଗି କ୍ୟାମ୍ପ ଓ ସ୍ଲମ୍ ମାନଙ୍କରେ ନର୍କମୟ ଜୀବନ ଯାପନ କରୁଛନ୍ତି।

ବର୍ତ୍ତମାନ ପୃଥିବୀର ଜନସଂଖ୍ୟା ବୃଦ୍ଧିକୁ ଯଦି ରୋକାନଯାଏ ତେବେ ବର୍ତ୍ତମାନର ୫୩୦କୋଟି ଲୋକସଂଖ୍ୟା ଏ ଶତାବ୍ଦୀ ଶେଷ ବେଳକୁ ୧୪ଶହ କୋଟିରେ ପହଞ୍ଚିଯିବ। ଏମାନଙ୍କୁ ଖାଦ୍ୟ ବସ୍ତ୍ର ଯୋଗାଇବାକୁ ଯାଇ ପ୍ରକୃତି ଉପରେ ଅତ୍ୟାଚାର ବଢ଼ି ଚାଲିବ ଓ ଶେଷରେ ସମସ୍ତଙ୍କୁ ଏହା ଧ୍ୱଂସ ମୁଖକୁ ଠେଲି ଦେବ।

## ଆମର ବିଶ୍ୱ, ଆମର ସ୍ୱାସ୍ଥ୍ୟ

ଏଇ ଥିଲା ୧୯୯୦ ବିଶ୍ୱ ସ୍ୱାସ୍ଥ୍ୟ ଦିବସ ପାଇଁ ସ୍ଲୋଗାନ୍। ପରିବେଶ ଜନିତ ସମସ୍ୟା ମଣିଷର ସ୍ୱାସ୍ଥ୍ୟପାଇଁ ଭୟାବହ ସମସ୍ୟା ସୃଷ୍ଟି କରିଛି। ବାୟୁ, ଜଳ, ମାଟି, ଫସଲ ଆଦି ପ୍ରଦୂଷିତ ହେବା ଫଳରେ ମଣିଷ ନାନା ରୋଗର ଶିକାର ହେଉଛି। ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ହିସାବରୁ ଜଣାଯାଇଛି ଯେ, ପ୍ରାୟ ୬୨ କୋଟି ଲୋକ ଏଭଳି ଜାଗାରେ ବାସ କରୁଛନ୍ତି ଯେଉଁଠି କଳକାରଖାନା, ମଟର ଗାଡି ଆଦିରୁ ବାହାରୁଥିବା ମାରାତ୍ମକ ସଲ୍‌ଫର ଡ଼ାଇଅକ୍ସାଇଡ୍‌ର ପରିମାଣ ମଣିଷର ସହନ ଶକ୍ତିର ବହୁ ଉପରେ। ଏଥିରୁ ଆହୁରି ମଧ୍ୟ ଜଣାଯାଇଛି ଯେ, ପ୍ରାୟ ୧୫୦କୋଟି ଲୋକ ଅତ୍ୟଧିକ ଧୂଳିକଣାଯୁକ୍ତ ବାୟୁ ସେବନ କରିବାକୁ ବାଧ୍ୟ ହେଉଛନ୍ତି। ତାହାଫଳରେ ମାରାତ୍ମକ ଶ୍ୱାସ ଜନିତ ରୋଗରେ ଲକ୍ଷ ଲକ୍ଷ ଲୋକ ପୀଡିତ ହେଉଛନ୍ତି।

## ଆମ ଘର ଖବର

ପରିବେଶ ଜନିତ ଏହିଭଳି ଅନେକ ସମସ୍ୟା ରହିଛି। ଏଇଛୋଟିଆ ପରିସର ମଧ୍ୟରେ ସବୁ କଥା ଆଲୋଚନା କରିବା ସମ୍ଭବ ନୁହେଁ।



ପୃଥିବୀକୁ ମାଡ଼ିଆସୁଥିବା ବିପଦ ଓ ମଣିଷ ଧ୍ୱଂସ ହେବା ସମ୍ପର୍କରେ ଅନେକ ଭବିଷ୍ୟତ ବାଣୀ କରାଯାଉଛି। ପ୍ରକୃତିର ଏ ବିପର୍ଯ୍ୟୟ ଆଉ କୌଣସି ଏକ ନିର୍ଦ୍ଦିଷ୍ଟ ଦେଶର ଦାୟିତ୍ୱ ହୋଇ ରହିନାହିଁ। କାରଣ କୌଣସି ଗୋଟିଏ ଦେଶ ଚାହିଁଲେ ମଧ୍ୟ ଜଳବାୟୁକୁ ସ୍ଥିର ରଖି ପାରିବ ନାହିଁ; 'ଓଜୋନ' ସ୍ତରର ସୁରକ୍ଷା କରିପାରିବ ନାହିଁ; ବାୟୁ ମଣ୍ଡଳକୁ ପ୍ରଦୂଷଣରୁ ମୁକ୍ତକରି ପାରିବ ନାହିଁ ତଥା ପୃଥିବୀର ସବୁଜିମା ଫେରାଇ ଆଣି ପାରିବ ନାହିଁ। ଏଥିପାଇଁ ସବୁଦେଶ; ଏପରିକି ପ୍ରତ୍ୟେକ ବ୍ୟକ୍ତିର ସହଯୋଗ ଏକାନ୍ତ ପ୍ରୟୋଜନ। ତେବେ ଆମ ଦେଶର ପରିବେଶ ଖବର କିପରି ?

## ପ୍ରତି ମିନିଟିରେ ସାଢେ ସାତ ଏକର

ଆମ ଦେଶର ବାର୍ଷିକ ହାରାହାରି ଚାରିଶହ ନିୟୁତ ହେକ୍ଟର ମିଟର ଜଳ ସମ୍ପଦ ମଧ୍ୟରୁ ତିନିଶହ ନିୟୁତ ହେକ୍ଟର ବର୍ଷର ଚାରିମାସ ମୌସୁମୀ ବର୍ଷାରୁ ହିଁ ମିଳିଥାଏ। କ୍ରମାଗତ ଭାବେ ଜଂଗଲ କ୍ଷୟ ଯୋଗୁଁ ମୌସୁମୀ ବର୍ଷାର ଅନିଶ୍ଚିତତା ଦେଖାଦେଲାଣି। ଫଳରେ ବନ୍ୟା ଓ ମରୁଡ଼ି ସମସ୍ୟା କ୍ରମେ ଭୟଙ୍କର ରୂପ ଧାରଣ କରୁଛି। ଉପଗ୍ରହ ମାଧ୍ୟମରୁ ମିଳିଥିବା ତଥ୍ୟରୁ ଜଣାଯାଏ, ସଂପ୍ରତି ଆମ ଦେଶ ବାର୍ଷିକ ତେରଲକ୍ଷ ହେକ୍ଟର ଜଂଗଲ ହରାଉଛି।

ଆମ ରାଜ୍ୟର ଜଂଗଲ ଶତକଡ଼ା ଏଗାର ଭାଗକୁ ହ୍ରାସ ପାଇଲାଣି ବୋଲି ଉପଗ୍ରହ ଚିତ୍ରରୁ ଜଣାପଡୁଛି। ଓଡ଼ିଶାରେ ପ୍ରତି ମିନିଟ୍‌ରେ ହାରାହାରି ସାଢ଼େ ସାତ ଏକର ଜଂଗଲ ନଷ୍ଟ ହେଉଛି। ଜଂଗଲ କ୍ଷୟ ଯୋଗୁଁ କଳାହାଣ୍ଡିର ବାର୍ଷିକ ହାରାହାରି ବୃଷ୍ଟିପାତ ପରିମାଣ ୧୨୫୩ ମି.ମି.ରୁ ୯୮୫ ମି.ମି. କୁ ହ୍ରାସ ପାଇଥିବା ଏକ ଅନୁଧ୍ୟାନରୁ ଜଣାପଡ଼ିଛି। କ୍ରମାଗତ ମରୁଡ଼ି ଯୋଗୁଁ ଲୋକ କାମଧନ୍ଦା ନପାଇ ଗାଁ ଗଣ୍ଡା ଛାଡି କୁଲିଗିରି କରୁଥିବା ସମ୍ବାଦ କ୍ରମାଗତ ଭାବେ ଖବର କାଗଜର ପୃଷ୍ଠା ମଣ୍ଡନ କରୁଛି।

## ପଟୁମାଟିର ପଟୁଆର

ଜଂଗଲ ନଷ୍ଟ ହେବାରୁ ଉର୍ବର ପଟୁମାଟିର ପଟୁଆର ଛୁଟିଛି-ପ୍ରତିବର୍ଷ ଭାରତର ନଦୀମାନଙ୍କ ଦ୍ୱାରା ଛଅ ହଜାର ଲକ୍ଷଟନ ଉର୍ବର ମାଟି ଧୋଇଯାଉଛି ସମୁଦ୍ରକୁ। ପଟୁମାଟିରେ ନଦୀ ଗର୍ଭ ପୋତି ହେଉଛି ଓ ବନ୍ଧ ବାଡ଼ ଆଦି ନିର୍ମାଣ ଯୋଗୁଁ ନଦୀ ସ୍ରୋତ ସଂକୁଚିତ ହେଉଛି। ଫଳରେ ନଦୀ ଜଳ କୂଳ ଲଂଘନ କରି ବନ୍ୟା ବିପ୍ଳାତ ସୃଷ୍ଟି କରୁଛି। ବିଗତ ପନ୍ଦର ବର୍ଷ ଭିତରେ ଭାରତର ଦୁଇଶହ ଲକ୍ଷ ହେକ୍ଟର ଜମିକୁ ଆକ୍ରାନ୍ତ କରୁଥିବା ବନ୍ୟା ବର୍ତ୍ତମାନ ସଂପ୍ରସାରିତ ହୋଇଛି ଛଅଶହ ଲକ୍ଷ ହେକ୍ଟର ଜମିକୁ। ଓଡ଼ିଶାରେ ଗୋଟିଏ ଶତାବ୍ଦୀ ଭିତରେ କେବେ ବି ବନ୍ୟା ହୋଇ ନଥିବା କୋରାପୁଟର ଗୁଣୁପୁର ଓ ଗଞ୍ଜାମର ଆସିକା ସହରରେ ବନ୍ୟା ବିପ୍ଳାତ ଏବେକାର ଆଖି ଦେଖା କଥା।

## ମାଟି ନାହିଁ ତ ଘାସ ନାହିଁ

ମାଟି ଉପରେ ଗଛ ନରହିଲେ ତାର ଅବସ୍ଥା କ'ଣ ହୁଏ ତା'ର ଆଖିଦେଖା ଉଦାହରଣ ହେଉଛି ଚେରାପୁଞ୍ଜି। ପୃଥିବୀର ବେଶୀ ବୃଷ୍ଟିପାତ ହେଉଥିବା ଅଞ୍ଚଳ ହୋଇଥିଲେ ବି ସେଠି ପିଇବା ପାଣି ମିଳିବା କଷ୍ଟ। ପାହାଡ ଉପରେ ଗଛ ନଥିବାରୁ ଉପରମାଟି ପୁରାପୁରି ଧୋଇ ହୋଇଯାଇଛି। ଗଛ ନଥିବାରୁ ମାଟିର ଜଳଧାରଣ ଶକ୍ତି ନାହିଁ। ମାଟି ଏତେ ଟାଣ ହୋଇଯାଇଛି ଯେ, କେଉଁଏ ଘାସ କଅଁଳୁ ନାହିଁ। ଆମ ଜିଲ୍ଲାର କଳାହାଣ୍ଡି, ବଲାଙ୍ଗୀର, ଓ ସମ୍ବଲପୁରର ବିସ୍ତୀର୍ଣ୍ଣ ଅଞ୍ଚଳରେ ଏଭଳି ଅବସ୍ଥା ସୃଷ୍ଟି ହୋଇ ସାରିଲାଣି।

## ଧର୍ଷିତା ହିମାଳୟ

ହିମାଳୟ ପର୍ବତ ଅଞ୍ଚଳ ଟାଙ୍ଗର ମରୁଭୂମିରେ ପରିଣତ ହେବ, ଏକଥା ଶୁଣିଲେ କାନକୁ କିପରି ଖଟ୍‌କା ଲାଗୁଛି। ହେଲେ ତିବ୍ବତ ଆଡୁ ମରୁଭୂମି ସମ୍ପ୍ରସାରିତ ହେବାର ଖବର ମିଳିଲାଣି। ଆମର ଗୌରବ ଓ ଦେଶକୁ ମୌସୁମୀ ବର୍ଷାର ବରଦାନରେ ଶସ୍ୟ ଶ୍ୟାମଳା କରୁଥିବା ହିମାଳୟ ଆଜି ଆମର ଲୋଭ ଓ ଅତ୍ୟାଚାରର ଶୀକାର ହୋଇଛି। ଏଭରେଷ୍ଟ ଶୃଙ୍ଗ ଆରୋହଣ କରିଥିବା ସାର୍ ଏଡ୍‌ମଣ୍ଡ ହିଲାରୀଙ୍କ ଭାଷାରେ "ପୃଥିବୀର ଉଚ୍ଚତମ ଓ ବୟସରେ କନିଷ୍ଠତମ ହିମାଳୟ ଏବେ ପର୍ଯ୍ୟାପ୍ତ ଜଙ୍ଗଲ କ୍ଷୟ ଓ ମୃତ୍ତିକା କ୍ଷୟରେ ଧର୍ଷିତା ହୋଇ ଚାଲିଛି।"

## ଅପବିତ୍ର ଗଙ୍ଗା

ଭାରତର ବଡ଼ବଡ଼ ସହରଗୁଡ଼ିକ ମୁଖ୍ୟତଃ ନଦୀକୂଳରେ ଅବସ୍ଥିତ। ଏହାଛଡ଼ା ଅନେକ ବଡ଼ବଡ଼ କଳକାରଖାନା ମଧ୍ୟ ନଦୀକୂଳରେ ଗଢ଼ିଉଠିଛି। ସହର, କଳକାରଖାନା ମାନଙ୍କର ମଇଳା, ଆବର୍ଜନା ସବୁ ନଦୀ ଭିତରକୁ ଛାଡ଼ି ଦିଆଯାଉଛି। ଏହାଛଡ଼ା ଚାଷ ଜମିରେ ବ୍ୟବହୃତ ହେଉଥିବା ସାର, କୀଟନାଶକ ଔଷଧ ସବୁ ବି ନଦୀ ନାଳ ଭିତରକୁ ଧୋଇ ଯାଉଛି। ଫଳରେ ଅନେକ ନଦୀର ଜଳ ଆଉ ମଣିଷ ଓ ଜୀବଜନ୍ତୁଙ୍କର ବ୍ୟବହାର ଉପଯୋଗୀ ହୋଇ ନାହିଁ। ଉଦାହରଣ ସ୍ୱରୂପ - ବାରଣାସୀଠାରେ ଗଙ୍ଗାନଦୀର ଜଳକୁ ପରୀକ୍ଷା କରାଯାଇ ଜଣାପଡ଼ିଛି, ଏହା ଏଭଳି ପ୍ରଦୂଷିତ ଯେ, ଏହା ଆଉ ବ୍ୟବହାର ଉପଯୋଗୀ ନୁହେଁ। ଆମ ରାଜ୍ୟରେ ବ୍ରାହ୍ମଣୀ, ମହାନଦୀର ଜଳ ଖଣି ଓ କାରଖାନାରୁ ନିର୍ଗତ ରାସାୟନିକ ଦ୍ରବ୍ୟ ଦ୍ୱାରା ଅତିମାତ୍ରାରେ ଦୂଷିତ ହୋଇ ପଡ଼ିଥିବା ଖବର ଜଣାପଡ଼ିଛି।

## ଦିଲ୍ଲୀର ସ୍ଥାନ ଚତୁର୍ଥ

ଜଳ ପ୍ରଦୂଷଣ ଭଳି ବାୟୁ ପ୍ରଦୂଷଣ ଆମ ଦେଶରେ ଏକ ମୁଖ୍ୟ ସମସ୍ୟା ରୂପେ ଦେଖାଦେଇଛି। ଜାତିସଙ୍ଘର ପରିବେଶ ସଂଗଠନ ପକ୍ଷରୁ କରାଯାଇଥିବା ଏକ ସର୍ଭେରୁ ଜଣାଯାଇଛି ଯେ, କଲିକତା, ବମ୍ବେ ଓ ଦିଲ୍ଲୀ ଆଦିରେ ଥିବା କଳ କାରଖାନାରୁ ନିର୍ଗତ ସଲଫର ଡାଇଅକ୍ସାଇଡ୍ ବାଷ୍ପ ଯୋଗୁଁ ସେଠାକାର ବାୟୁମଣ୍ଡଳ ଅତିମାତ୍ରାରେ ଦୂଷିତ ହୋଇଯାଇଛି। ବ୍ରାଜିଲ୍‌ର ସହରଗୁଡ଼ିକ ବାୟୁ ପ୍ରଦୂଷଣରେ ପ୍ରଥମ ସ୍ଥାନ ଅଧିକାର କରିଥିବା ବେଳେ, ଦିଲ୍ଲୀର ସ୍ଥାନ ହେଉଛି ଚତୁର୍ଥ।

ଓଡ଼ିଶାର ଅନୁଗୁଳ, ତାଳଚେର, ରାଉରକେଲା, ରାଜଗାଙ୍ଗପୁର ଓ କଟକ ସହର ଅଞ୍ଚଳର ବାୟୁମଣ୍ଡଳ ଏଭଳି ଦୂଷିତ ହୋଇଯାଇଛି ଯେ, ଏହି ସ୍ଥାନମାନଙ୍କୁ ପରିବେଶ 'ହଟ୍ ସ୍ପଟ୍' ହିସାବରେ ଚିହ୍ନିତ କରାଯାଇଛି।

ଅତ୍ୟଧିକ ବାୟୁ ପ୍ରଦୂଷିତ ଅଞ୍ଚଳରେ ଯକ୍ଷ୍ମା, ବ୍ରୋଙ୍କାଇଟିସ୍, ଶ୍ୱାସ, ସିଲିକୋସିସ୍, ଆଖି ରୋଗ ଆଦି ବିଭିନ୍ନ ରୋଗରେ ଲୋକମାନେ ଅଧିକରୁ ଅଧିକ ଆକ୍ରାନ୍ତ ହେଉଛନ୍ତି।

## ଆମର କେତୋଟି ପିଲା ଦରକାର ?

ଶେଷକୁ ଏ ପ୍ରଶ୍ନ ସମସ୍ତେ ନିଜକୁ ପଚାରିବାର ସମୟ ଆସିଯାଇଛି। ଏବର ୮୪ କୋଟି ଲୋକସଂଖ୍ୟା ଶତାବ୍ଦୀ ଶେଷ ବେଳକୁ ୧୦୦ କୋଟିକୁ ଟପିଯିବାର ଆଶଙ୍କା ଦେଖାଦେଲାଣି। ଭାରତ ଏଯାଏଁ ତାହାର ଛୋଟ ପରିବାର ଲକ୍ଷ୍ୟ ପୂରଣ କରିପାରି ନାହିଁ। ଆନ୍ତର୍ଜାତିକ ସ୍ତରରେ କୁହାଯାଉଛି ଯେ, ପୃଥିବୀକୁ ରକ୍ଷା କରିବା ପାଇଁ ଜନ୍ମହାର ରୋକିବା ଲାଗି ନବେ ଦଶକ ମଣିଷ ସମାଜ ପାଇଁ ଶେଷ ସୁଯୋଗ। ଏକ ଅନୁସଂଧାନରୁ ଜଣା ପଡ଼ିଛି ଯେ, ଭାରତର ମାତ୍ର ୧୫ରୁ ୪୨ ପ୍ରତିଶତ ଦମ୍ପତି ପରିବାର ନିୟନ୍ତ୍ରଣ ପଦ୍ଧତି ବ୍ୟବହାର କରୁଛନ୍ତି ଏବଂ ଦମ୍ପତି ପିଛା ହାରାହାରି ୪.୩ ପିଲା ଅଛନ୍ତି। ପ୍ରକୃତିର ଭାରସାମ୍ୟ ରଖିବା ଓ ସମସ୍ତଙ୍କ ପାଇଁ ସୁଖ ସୁବିଧାର ସୁଯୋଗ ସୃଷ୍ଟି କରିବା ଲାଗି ଜନସଂଖ୍ୟା ବୃଦ୍ଧିର ତୁରନ୍ତ ନିୟନ୍ତ୍ରଣ ଦରକାର।

## ଆହୁରି ଅନେକ ଅଛି

ଆହୁରି ଅନେକ କଥା ରହିଛି ଯାହା ପରିବେଶକୁ ଦୂଷିତ କରିବା ସଙ୍ଗେସଙ୍ଗେ ଜୀବଜଗତକୁ କ୍ଷତି ପହୁଞ୍ଚାଇବାର ସମ୍ଭାବନା ସୃଷ୍ଟି କରିଛି। ଯଥା - ଭାରତ ବାର୍ଷିକ ପ୍ରାୟ ୧ ଲକ୍ଷ ମେଟ୍ରିକ ଟନ୍ ରସାୟନିକ ଔଷଧ ବ୍ୟବହାର କରିଥାଏ, ଯାହା ପଶ୍ଚିମ ଦେଶମାନଙ୍କରେ ନିଷିଦ୍ଧ କରାଯାଇଛି। ଏହାଛଡ଼ା ଅତ୍ୟଧିକ ସାର ବ୍ୟବହାର ଯୋଗୁଁ ଜମି ଲୁଣା ମାରିଯିବା, ବୃହତ୍ ନଦୀବନ୍ଧ ଯୋଜନା, ଖଣି, ପ୍ରକଳ୍ପ ଇତ୍ୟାଦି ପରିବେଶକୁ ନଷ୍ଟ କରୁଥିବା ଗୁରୁତର ସମସ୍ୟାମାନ ରହିଛି। ତେବେ ଏଠି ପରିବେଶ ସମ୍ପର୍କରେ ଏକ ନିବିଡ଼ ଓ ସମ୍ପୂର୍ଣ୍ଣ ଆଲୋଚନା କରିବା ସମ୍ଭବ ନୁହେଁ। ଉପରେ ଯେଉଁ ତଥ୍ୟ ଦିଆଗଲା ତାହା କେବଳ ବିଭିନ୍ନ ସମସ୍ୟା ସମ୍ପର୍କରେ ଆପଣଙ୍କୁ ସୂଚନା ଦେବାଲାଗି। କେବଳ ତଥ୍ୟକୁ ନେଇ ପରିବେଶକୁ ବୁଝିବା ଓ ସେଥିପାଇଁ କିଛି କରିବା ସମ୍ଭବ ନୁହେଁ। ଏଥିପାଇଁ ନିଜର ଭାବନା, ଚିନ୍ତା ସବୁକୁ ମିଶେଇବାକୁ ହେବ। ନିଜେ ଚାହିଁଲେ ପ୍ରତିଦିନ ଖବରକାଗଜ, ରେଡିଓ, ଟି.ଭି. ଆଦିରୁ ଏ ବିଷୟରେ ଅନେକ ଖବର ସଂଗ୍ରହ କରିପାରିବେ।

## ମାଳିକା ବଚନ

ଉପରେ ପରିବେଶ ସମ୍ପର୍କରେ ଯେଉଁସବୁ ଚିତ୍ର ଓ ତଥ୍ୟ ପରିବେଷଣ କରାଗଲା ତାହା ମାଳିକାର ଭବିଷ୍ୟତ ବାଣୀ ଭଳି ଲାଗିପାରେ। ହେଲେ, ସେଗୁଡ଼ିକ କେବଳ ଦୂର ଆକାଶ, ସମୁଦ୍ର, ଜଳବାୟୁ

ଓ ଆଉ କେଉଁ ଦୂରଦେଶ କଥା ନୁହେଁ; ନିରାଟ ବାସ୍ତବତା। ଏକଥା ଆମେ ପରିବାର, ନିଜ ଗାଁ, ନିଜ ଅଞ୍ଚଳ ଓ ଆମ ନିଜ ବଞ୍ଚିବାର ଧାରାକୁ ଅନୁଧ୍ୟାନ କଲେ ଜାଣିପାରିବା। ଆମେ ଗୋଟିଏ ଗୋଟିଏ କରି ଯେଉଁଦିନ ସବୁ ବଞ୍ଚୁଛେ, ସେଥିରୁ କ'ଣ ଅନୁଭବ କରୁନେ ଯେ ଗୋଟିଏ କିଛି ଅଭାବ ରହିଯାଉଛି; ବଞ୍ଚିବା ଧିରେ ଧିରେ କଷ୍ଟକର ହୋଇଯାଉଛି; ଜୀବନର ମଜା ରହୁନି !!!

## "ଆନ୍ତର୍ଜାତିକ ଚିନ୍ତା, ଆଞ୍ଚଳିକ କାମ"

ଏବେ ଏକଥାର ତାତ୍ପର୍ଯ୍ୟ ବୁଝିବାର ସମୟ ଆସିଛି। ଆମେ ବ୍ୟକ୍ତିଗତ ସ୍ତରରେ ମଧ୍ୟ ମେରୁ ଅଞ୍ଚଳରେ "ଓଜୋନ" ସ୍ତର ହ୍ରାସ ରୋକିବାରେ ସାହାଯ୍ୟ କରିପାରିବା।

ନିଜ ଗାଁରୁ, ନିଜ ଅଞ୍ଚଳରୁ ଆରମ୍ଭ କରିବା। ଟିକେ ଅଲଗା ଆଖିରେ ନିଜ ପରିବେଶକୁ ଦେଖନ୍ତୁ ତ; କ'ଣ ଦେଖିବେ -





ଗାଁରେ ଜାଳ ମିଳୁନି, ଘରର ଝିଅବୋହୂ କେଉଁ ଦିଲବାଡ଼ି ଅପତରାକୁ ଯାଉଛନ୍ତି; ଜାଠି କୁଟା, ଗୋବର ଘଷି ଗୋଟେଇ। ଘରର ଯତ୍ନ, ପିଲାଙ୍କର ଯତ୍ନ ନେବାକୁ ସମୟ ନାହିଁ। ସମୟ ଅଭାବରୁ ଘରର ଚେହେରା, ପିଲାଙ୍କ ଭବିଷ୍ୟତ ନଷ୍ଟ ହେଉଛି।

କେତେକ ଗାଁରେ ଖରାଦିନ ନହେଉଣୁ କୂଅ, ପୋଖରୀ ସବୁ ଶୁଖିଯାଉଛି। କାହିଁ କେତେଦୂରରୁ ଯାଇ ପାଣି ଆଣିବାକୁ ପଡୁଛି। କେଉଁଠି କେଉଁଠି ଅତ୍ୟଧିକ ସାର, ଔଷଧ ଦେବାଫଳରେ ମାଟି ଲୁଣା ଫୁଟି ପଡ଼ିଲାଣି ବା ମାଟିରୁ ବଳ କମିଗଲାଣି। ଫସଲ ଅମଳ କମ୍ ହେବାରୁ ଅନେକଙ୍କ ପାଇଁ ପେଟ ପୋଷିବା କଷ୍ଟକର ହେଉଛି।

କେଉଁଠି କେଉଁଠି ବର୍ଷା ହେବାର ଆଉ କିଛି ଠିକ୍ ଠିକଣା ରହୁନାହିଁ। ଲାଗ୍ ଲାଗ୍ ଫସଲ ନ ହେବାରୁ ଲୋକେ ଜମିବାଡ଼ି ଉପରୁ ଆଶା ତୁଟେଇ ହଳ ହଡ଼ା ବିକି ଭାଙ୍ଗି ଦେଇ ପଳାଉଛନ୍ତି, କେଉଁଠି କୁଲିଗିରି କରିବେ।

ଆମର ବାର ପୂନେଇଁ ତେର ଯାତରେ କେତେ ରକମର ଫଳ, ପନିପରିବା ମିଳୁଥିଲା। ଯେମିତି ଏସବୁ ଖାଇବା ବାହାନାରେ ହିଁ ପର୍ବପର୍ବାଣୀ କରାଯାଉଥିଲା। ଏବେ ଆଳୁ ବାଇଗଣ ବି ବାହାରୁ କିଣି ଆଣିବାକୁ ପଡୁଛି। କଖାରୁ ପୋଇ ମନ୍ଦାଟିଏ ଚାଳ ଉପରକୁ ମଡ଼ାଇବା ଅଭ୍ୟାସ ବି ଲୋକେ ଛାଡ଼ିସାରିଲେଣି।

ନିଜ ଗାଁରେ, ରହୁଥିବା ଜାଗାରେ ଲକ୍ଷ୍ୟକଲେ ଜାଣିବେ ଆଗ ଅପେକ୍ଷା କେତେ ଲୋକ ବଢ଼ିଲେଣି। ଗୋଟିଏ ଗୋଟିଏ ଘର କେତେ ଭାଗ ହୋଇସାରିଲାଣି। ଏତିକି ଟିକେ ଜାଗାରେ କେତେ ଲୋକଙ୍କୁ ରହିବାପାଇଁ ପଡୁଛି - ରୋଷେଇ ବାସ ସବୁ ତା'ରି ଭିତରେ, ଶାନ୍ତି ଆସିବ କୁଆଡୁ! ହେଲେ ରହିବାକୁ ବାଧ୍ୟ। ନୂଆଘର ଖଣ୍ଡିଏ କରିବାତ ଦୂରର କଥା, ପୁରୁଣାକୁ ସଜାଡ଼ିବା କାଠିକର ପାଠ। କାଠ ବାଉଁଶ ଆଉ ଗାଁରେ ମିଳୁ ନାହିଁ। ସବୁ ବାହାରୁ କିଣା।

କେଉଁଠି କେଉଁଠି ବଞ୍ଚିବାର ଅନ୍ୟକିଛି ବାଟ ନ ପାଇ ଲୋକ ଜଙ୍ଗଲ କାଟି ପକାଉଛନ୍ତି।

ବିଜୁଳି ବତୀ ଜଳିଲାଣି, ଟି.ଭି. ଗଲାଣି ହେଲେ ଜଳ ଗଡ଼ିଆ, ଗୁହ ପଡ଼ିଆ ଯେମିତି କୁ

ଯେମିତି। କୁଢ଼ କୁଢ଼ ମଇଳା ଗଦାହୋଇ ରହୁଛି। ରୋଗ ବଇରାଗ ଲାଗି ରହିଛି।

କୋଠ ବଗିଚା ପଦା ହୋଇଗଲାଣି। ଜଗାର, ଦୋଳଯାତରା, ପୁଷ୍ ପୁନି, ନୂଆଖାଇ ଆଗରଳି ଆଉ ନାହିଁ। ଏକାଠି ବସି ଖାଇବା ପିଇବା; ମଉଜ ମଜଲିସ୍ କରିବା ଆଉ ସମ୍ଭବ ହେଉନି। ଖାଇପିଇ ବଞ୍ଚିବାକୁ ବେଳ ହେଉନାହିଁ; କାହାର ସମୟ ଅଛି ଏସବୁ କରିବାକୁ।

ଜାଳ ଆଦି ସୁବିଧାରେ ନ ମିଳିବାରୁ ସ୍ତ୍ରୀ ଲୋକଙ୍କ ଉପରେ କାମର ବୋଝ ବଢ଼ିଯାଉଛି। ସମୟ ହେଉନାହିଁ ବୋଲି ତ ନିଜଘର ଲିପା ପୋଛା ବି ହୋଇ ପାରୁନି। ବାଡ଼ିରେ ଗଛଟିଏ ଲଗାଇବା ଦୂରର କଥା, ଏମିତିକି ଦୁଇ ତିନି ଘର ବାଡ଼ି ବୁଲି ଆସିଲେ ବି ଠାକୁର ପୂଜା ପାଇଁ ଫୁଲ ଦି'ଟା ଯୋଗାଡ଼ ହୋଇପାରୁନି।

## ସବୁଜ ସପନ

ଚାରିଆଡ଼େ ଯେ ହତାଶାର ବାତାବରଣ ଛାଇ ଯାଇଛି, ସେ କଥା ନୁହେଁ। ପୃଥିବୀର ବେଶ୍ କିଛି ଲୋକ ସ୍ୱପ୍ନ ଦେଖିବା ଆରମ୍ଭ କଲେଣି - ସବୁଜ ସ୍ୱପ୍ନ, କାମ ବି ଆରମ୍ଭ କରିଦେଲେଣି - ପୁଣି ପୃଥିବୀକୁ ସବୁଜିମାରେ ଭରିଦେବାକୁ।

ବିଭିନ୍ନ ସ୍ଥାନରେ ପରିବେଶ ଆନ୍ଦୋଳନ ମାନ ମୁଣ୍ଡ ଟେକୁଛି - ବ୍ରାଜିଲ୍‌ର ଚିକୋ ମେଣ୍ଡିଜ୍‌ଙ୍କ କଥା ଶୁଣିଥିବେ - ଯେ କି ଜଙ୍ଗଲ ବଞ୍ଚାଇବାକୁ ଯାଇ ଗୁଳିରେ ପ୍ରାଣ ଦେଲେ। ଆମ ଦେଶର ଚିପ୍‌କୋ, ନର୍ମଦା ବଞ୍ଚାଅ, ବାଲିଆପାଳ, ବାଲ୍‌କୋ .......... ଏମିତି ଅନେକ ଜାଗାରେ ଲୋକେ ପରିବେଶକୁ କ୍ଷତି ପହଞ୍ଚାଉଥିବା କାମର ବିରୋଧ କଲେଣି।

ମହାରାଷ୍ଟ୍ରର 'ରାଲେ ଗାଁ ସିଦ୍ଧି' ପରି ଅନେକ ଗାଁର ଗୁଁ ଆନ୍ନାସାହେବ ହଜାରେଙ୍କ ଭଳି ବ୍ୟକ୍ତିମାନଙ୍କ ପ୍ରଚେଷ୍ଟା ଫଳରେ ପୁଣି ସବୁଜିମାରେ ଭରି ଆସୁଛି। ଆମ ରାଜ୍ୟର ନୟାଗଡ଼ ଅଞ୍ଚଳର ''ବୃକ୍ଷ ଓ ଜୀବର ବଂଧୁ'' ଭଳି ଅନେକ ସ୍ୱେଚ୍ଛାସେବୀ ସଂସ୍ଥା ଏ ବାବଦରେ ଅନେକ ଉଲ୍ଲେଖନୀୟ କାମ କଲେଣି। ଅନେକ ଗାଁରେ ଜଙ୍ଗଲ ଜଗିବା, ଗଛ ଲଗାଇବା କାମରେ ଲୋକେ ଅଣ୍ଟାଭିଡ଼ି ବାହାରିଲେଣି। ପ୍ରକୃତି, ପରିବେଶ ଉପରେ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉଠିଲାଣି।

ପରିବେଶ ସୁରକ୍ଷା ପାଇଁ ଆନ୍ତର୍ଜାତୀକ ସ୍ତରରେ ମଧ ବେଶ୍ କିଛି ବର୍ଷ ହେଲା ବିଭିନ୍ନ ଉଦ୍ୟମ ହୋଇ ଆସୁଛି ଓ ଆନ୍ତର୍ଜାତୀକ ସମ୍ମିଳନୀ, ଅନ୍ତର୍ଦେଶୀୟ ବୁଝାମଣା ଆଦି ମାଧମରେ ବିଭିନ୍ନ ପଦକ୍ଷେପମାନ ନିଆ ଯାଉଛି। ଏସବୁ ଦୃଷ୍ଟିରୁ ୧୯୯୨ ଏକ ସ୍ୱତନ୍ତ୍ର ସ୍ଥାନ ଗ୍ରହଣ କରିବାକୁ ଯାଉଛି। ଏବେ ସେ ସମ୍ବନ୍ଧରେ କିଛି ଜାଣିବା -

## ମିଳିତ ଜାତିସଂଘ ପରିବେଶ ଓ ବିକାଶ ସମ୍ମିଳନୀ

ପରିବେଶ ସଂକ୍ରାନ୍ତୀୟ ଐତିହାସିକ ଷ୍ଟକ୍‌ହୋମ୍ ସମ୍ମିଳନୀର ୨୦ ବର୍ଷ ପରେ, ୧୯୯୨ ଜୁନ୍ ମାସରେ ବ୍ରାଜିଲ୍‌ଠାରେ ଆଉ ଏକ ଐତିହାସିକ କାର୍ଯ୍ୟକ୍ରମର ପ୍ରସ୍ତୁତି ବହୁଦିନ ଧରି ଚାଲିଛି। ଏହାକୁ 'ମିଳିତ ଜାତି ସଂଘ ପରିବେଶ ଓ ବିକାଶ ସମ୍ମିଳନୀ' (ୟୁ.ଏନ୍.ସି.ଇ.ଡି. ୟୁନ୍‌ସେଡ୍) ଭାବରେ ନାମିତ କରାଯାଇଛି। ଏଥିରେ ସଦସ୍ୟ ରାଷ୍ଟ୍ରମାନଙ୍କର (ସଦସ୍ୟ ରାଷ୍ଟ୍ର - ୧୬୬) ରାଷ୍ଟ୍ର ମୁଖ୍ୟ ତଥା ପ୍ରତିନିଧି ମାନେ ଯୋଗ ଦେଇ ପରିବେଶ ସଂକ୍ରାନ୍ତୀୟ ବିଭିନ୍ନ ଗୁରୁତ୍ୱପୂର୍ଣ୍ଣ ବିଷୟରେ ଆଲୋଚନା କରିବା ସଙ୍ଗେ ସଙ୍ଗେ ଅନେକ ଯୁଗାନ୍ତକାରୀ ବୁଝାମଣାରେ ଦସ୍ତଖତ କରିବାର ସମ୍ଭାବନା ରହିଛି।

ସମ୍ମିଳନୀରେ ଆଲୋଚିତ ହେବାକୁ ଥିବା କେତେକ ମୁଖ୍ୟ ବିଷୟର ରୂପରେଖ ସମ୍ପର୍କରେ

ଚୁମ୍ବକରେ ଆଲୋଚନା କରାଯାଇପାରେ।

**ପୃଥିବୀର ଉତ୍ତାପ ବୃଦ୍ଧି:** ବ୍ରାଜିଲ୍ ସମ୍ମିଳନୀରେ ଏହା ଆଲୋଚନାର ଏକ ମୁଖ୍ୟ ବିଷୟବସ୍ତୁ ହେବ। ବେଶ୍ କିଛିଦିନ ହେଲା ଧନୀ ଓ ଗରିବ ରାଷ୍ଟ୍ରମାନଙ୍କ ମଧ୍ୟରେ ଏହାକୁ ନେଇ ଅନେକ ବାଦାନୁବାଦ ଚାଲିଛି। ଧନୀ ରାଷ୍ଟ୍ରମାନଙ୍କରେ ଥିବା କଳ କାରଖାନା, ଯାନବାହାନ ଓ ବିଳାସପୂର୍ଣ୍ଣ ଜୀବନ ଯାପନ ପ୍ରଣାଳୀ ଯେ ଏଥିପାଇଁ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବେ ମୁଖତଃ ଦାୟୀ ଏହା ଅନସ୍ୱୀକାର୍ଯ୍ୟ। ତେବେ, ଏଥିପାଇଁ ଅଧିକ ପରିମାଣରେ ଧାନଚାଷ ଓ ପଶୁପାଳନ କରୁଥିବା (ଏଥିଯୋଗୁଁ ଉତ୍ପନ୍ନ ମିଥେନ୍ ଗ୍ୟାସ୍ ପାଇଁ) ଚୀନ ଓ ଭାରତ ଭଳି ରାଷ୍ଟ୍ରମାନେ ଦାୟୀ ବୋଲି ଆମେରିକାର କେତେକ ସଂସ୍ଥା ଦୋଷାରୋପ କରୁଛନ୍ତି।

ଉତ୍ତାପ ବୃଦ୍ଧିରେ ସାହାଯ୍ୟ କରୁଥିବା ଗ୍ୟାସ୍ ବାୟୁମଣ୍ଡଳକୁ ଛଡ଼ାଯିବା ସମ୍ପର୍କରେ କଟକଣା କରାଯିବ; ଧନୀରାଷ୍ଟ୍ରମାନେ ପ୍ରଥମେ ଏହାକୁ ଲାଗୁକରିବା ଓ ପ୍ରଦୂଷଣମୁକ୍ତ କଳକାରଖାନା ପ୍ରତିଷ୍ଠା ପାଇଁ ଗରିବ ରାଷ୍ଟ୍ରମାନଙ୍କୁ ସମସ୍ତ ସାହାଯ୍ୟ ଯୋଗାଇ ଦେବା; ପରିବେଶ ପ୍ରଦୂଷଣକାରୀ ଦେଶକୁ ଦଣ୍ଡିତ କରିବା ଆଦି ସମ୍ପର୍କରେ ଉପଯୁକ୍ତ ବ୍ୟବସ୍ଥା ସମ୍ବନ୍ଧରେ ସମ୍ମିଳନୀରେ ନିର୍ଣ୍ଣୟ ନିଆଯିବ ବୋଲି ଆଶାକରାଯାଏ। ଉତ୍ତାପ ବୃଦ୍ଧିଯୋଗୁଁ ଦକ୍ଷିଣ ଏସିଆ ରାଷ୍ଟ୍ରଗୁଡ଼ିକ ବେଶୀ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ଥିବାରୁ ସେମାନଙ୍କର ବିଚାର ଓ କାର୍ଯ୍ୟକ୍ରମରେ ଐକ୍ୟବଦ୍ଧତା ପ୍ରକାଶ ପାଇବ ବୋଲି ବିଚାର କରାଯାଉଛି।

**ଜେନେଟିକ୍ ରିସୋର୍ସେସ୍ ଓ ଜେନେଟିକ୍ ଇଂଜିନିୟରିଂ:**

ଆମ ଦେଶ ଭଳି ଅନେକ ଦେଶ ଏକଦା ଜୈବିକ ବୈଚିତ୍ର୍ୟତା (ବାଇଓଲୋଜିକାଲ୍ ଡ଼ାଇଭରସିଟି)ରେ ପ୍ରାଚୁର୍ଯ୍ୟମୟ ଥିଲା। ଏହି 'ଜେନେଟିକ୍ ସମ୍ପଦ' ଆମର ମାଟି, ପାଣି, ପବନରେ ଯୁଗ ଯୁଗ ଧରି ବିକଶିତ ହେବା ସଙ୍ଗେ ସଙ୍ଗେ ଲୋକଙ୍କଦ୍ୱାରା ସୁରକ୍ଷିତ ହୋଇ ଆସିଥିଲା। ଦ୍ରୁତ ଜଙ୍ଗଲ କ୍ଷୟ ଯୋଗୁଁ ଏଥିରେ ଥିବା ଅମୂଲ୍ୟ 'ଜେନେଟିକ୍ ସମ୍ପଦ' ସବୁ ଆମେ ହରାଇ ବସିଛୁ। ଏବେ କୃଷି ଓ ପଶୁପାଳନ ଆଦିରେ ଆମେ ଅଧିକ ଉତ୍ପାଦନକାରୀ ସଙ୍କର ଜାତୀୟ ବିହନ ଅଧିକରୁ ଅଧିକ ବ୍ୟବହାର କରିବା ଫଳରେ ଆମ ପରିବେଶରେ ବିକଶିତ ହୋଇଥିବା ଅନେକ 'ଜେନେଟିକ୍ ସମ୍ପଦ' ଆସ୍ତେ ଆସ୍ତେ ଲୋପ ପାଇଯିବାକୁ ବସିଛି। ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଏସବୁ ସମ୍ପଦ ସଂଗ୍ରହ କରି ତାହାର ଏକଚାଟିଆ ବ୍ୟବସାୟ ଆରମ୍ଭ କରିଛନ୍ତି। ଆଗେ ଆମର ସ୍ୱତନ୍ତ୍ରତା ଓ ଜୈବିକ ବୈଚିତ୍ର୍ୟତା ହରାଇ କ୍ରମଶଃ ସେମାନଙ୍କ ଉପରେ ନିର୍ଭରଶୀଳ ହୋଇ ପଡୁଛୁ। ଏଭଳି ଚାଲିଲେ, ଚାଷପାଇଁ ବି ଦିନେ ଆମକୁ ଅନ୍ୟଦେଶର ନିର୍ଦ୍ଦେଶ ମାନିବାକୁ ପଡ଼ିପାରେ।

ଆମ ଦେଶଭଳି ଅନ୍ୟ ଦେଶରୁ ସଂଗୃହୀତ 'ଜେନେଟିକ୍ ସମ୍ପଦ' ଓ ତତ୍‌ସମ୍ପର୍କୀୟ ପ୍ରଯୁକ୍ତି ବିଦ୍ୟା ଉପରେ କିଭଳି ସବୁ ଦେଶର ସମାନ ଅଧିକାର ରହିବ ସେ ସମ୍ବନ୍ଧରେ ଦୃଢ଼ ମତ ପ୍ରକାଶ ପାଇବା ଦରକାର ଓ ଭାରତ ଭଳି ଦେଶ ଏ ସମ୍ପର୍କୀୟ ବୁଝାମଣାରେ ଦସ୍ତଖତ କରିବା ପୂର୍ବରୁ ଏ ବିଷୟରେ ଦୃଢ଼ ନିଶ୍ଚିତ ହେବା ଆବଶ୍ୟକ ବୋଲି ପ୍ରକାଶ ପାଉଛି।

**ଦାରିଦ୍ର୍ୟ ଓ ପରିବେଶ:** ଦାରିଦ୍ର୍ୟ ସହିତ ପରିବେଶ ଅବକ୍ଷୟ ସିଧାସଳଖ ଭାବେ ସମ୍ପର୍କିତ। ପୃଥିବୀର ଏକ ତୃତୀୟାଂଶ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବା ବେଳେ, ବିକାଶ ଶୀଳ ରାଷ୍ଟ୍ରରେ ଲୋକେ ଅତ୍ୟଧିକ ପ୍ରାଚୁର୍ଯ୍ୟ ଓ ବିଳାସପୂର୍ଣ୍ଣ ଜୀବନ ଯାପନ କରୁଛନ୍ତି। ଆମର ସମ୍ପଦ ସବୁ ବିକାଶ ଶୀଳ ଦେଶମାନଙ୍କର ସମୃଦ୍ଧି ପାଇଁ ବ୍ୟବହାର ହେଉଥିବାବେଳେ ଅନ୍ୟସବୁ ବିକାଶୋନ୍ମୁଖୀ ଦେଶମାନଙ୍କରେ ମରୁଭୂମି ବ୍ୟାପୁଛି, ବଢ଼ି ମରୁଡ଼ିରେ ଲୋକେ ସଢୁଛନ୍ତି। ବ୍ରାଜିଲ୍ ସମ୍ମିଳନୀରେ ଏ ସମ୍ପର୍କରେ ଦୃଢ଼ ମତ ପ୍ରକାଶ ପାଇବ ଓ ବିକାଶ ଶୀଳ ରାଷ୍ଟ୍ରମାନେ ଏହାକୁ

ଗୁରୁତ୍ୱ ଦେଇ ବିଚାର କରିବେ ବୋଲି ବିଚାର କରାଯାଉଛି।

ବ୍ରାଜିଲ୍ ସମ୍ମିଳନୀର ମୁଖ୍ୟ ଫଳାଫଳ ଏହି ସମ୍ପର୍କୀୟ ହେବ ବୋଲି ଆଶା କରାଯାଏ :

- 'ଭବିଷ୍ୟତର ପୃଥିବୀକୁ ମଣିଷ ଓ ଅନ୍ୟ ଜୀବଜଗତ ପାଇଁ ଅଧିକ ବାସଯୋଗ୍ୟ କରିବା'ର ଯୋଜନା କିପରି କାର୍ଯ୍ୟକାରୀ କରାଯିବ, ପରିବେଶ ଓ ବିକାଶ ସମ୍ପର୍କରେ ଦେଶ ଓ ଜନସାଧାରଣଙ୍କର ଆଚରଣକୁ କିପରି ନିୟନ୍ତ୍ରିତ କରାଯିବ ସେ ସମ୍ପର୍କରେ 'ପୃଥିବୀ ସନନ୍ଦ' ବା 'ଆର୍ଥ ଚାର୍ଟର' ଶୀର୍ଷକ ମୌଳିକ ନୀତି ସବୁର ଘୋଷଣା;
- ବାୟୁ ମଣ୍ଡଳ, ଜୈବିକ ବୈଚିତ୍ର୍ୟତା ଆଦିର ସୁରକ୍ଷା ସମ୍ପର୍କୀତ ବିଭିନ୍ନ ଆଇନଗତ ସମସ୍ୟା ସମ୍ପର୍କରେ ବୁଝାମଣା;
- ୧୯୯୨ ପରେ ଓ ୨୧ଶ ଶତାବ୍ଦୀରେ ସମ୍ମିଳନୀରେ ଆଲୋଚିତ ସମସ୍ୟା ଯଥା:- ପ୍ରାକୃତିକ ସମ୍ପଦର ସମବଣ୍ଟନ ଓ ବ୍ୟବହାର, ବିକାଶ ପାଇଁ ଅଧିକାର, ବିଳାସ ବ୍ୟସନ ପୂର୍ଣ୍ଣ ଚଳନି ଉପରେ କଟକଣା, ବିଶ୍ୱପରିବେଶ ପରିଚାଳନାରେ ସମସ୍ତଙ୍କର ଗଣତାନ୍ତ୍ରିକ ଅଧିକାର, ପରିବେଶ ନିରାପତ୍ତା ବ୍ୟବସ୍ଥା ଆଦି ସମ୍ପର୍କରେ କ'ଣ ସବୁ ପଦକ୍ଷେପ ନିଆଯିବ, କିଭଳି ନିଆଯିବ ଓ ଦାୟିତ୍ୱ ବଣ୍ଟନ କିପରି ହେବ - ସେଥିଲାଗି 'ଆଜେଣ୍ଡା - ୨୧'. ରୂପେ ନାମିତ କାର୍ଯ୍ୟକ୍ରମ ମାନଙ୍କର ଏକ ଖସଡ଼ା ପ୍ରସ୍ତୁତ କରାଯିବ;
- ଏହା ଛଡ଼ା କାର୍ଯ୍ୟକ୍ରମ ପାଇଁ ଆବଶ୍ୟକୀୟ ଅର୍ଥବ୍ୟବସ୍ଥା, ଟେକ୍ନୋଲୋଜି ହସ୍ତାନ୍ତର, ସମ୍ପର୍କୀତ ବିଭିନ୍ନ ସଂସ୍ଥାର କ୍ଷମତା ଓ କାର୍ଯ୍ୟପରିସର ବୃଦ୍ଧି ବିଷୟରେ ବୁଝାମଣା ଆଦି।

ଏହି ସମ୍ମିଳନୀରେ ଯୋଗଦାନ କରିବା ପୂର୍ବରୁ ଅନେକ ରାଷ୍ଟ୍ର ସରକାରୀ ଓ ବେସରକାରୀ ସ୍ତରରେ ବିଭିନ୍ନ ଆଲୋଚନା ମାଧ୍ୟମରେ ନିଜ ନିଜର ଆଭିମୁଖ୍ୟ ପ୍ରସ୍ତୁତ କରୁଛନ୍ତି। ପ୍ରଥମ ଥର ପାଇଁ ଆନ୍ତର୍ଜାତିକ ସ୍ତରରେ ସ୍ୱେଚ୍ଛାସେବୀ ସଙ୍ଗଠନ ମାନଙ୍କର ଭୂମିକାକୁ ସ୍ୱୀକାର କରାଯାଇ ଏହି ପ୍ରକ୍ରିୟାରେ ଭାଗ ନେବାପାଇଁ ଆମନ୍ତ୍ରଣ କରାଯାଇଛି। ସେମାନଙ୍କର ଏହି ବୁଝାମଣାରେ ଏକ ନିଶ୍ଚିତ ଓ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିବ ବୋଲି ଆଶାକରାଯାଉଛି।

ଆମ ସମସ୍ତଙ୍କର ଏଥିପାଇଁ କର୍ତ୍ତବ୍ୟ ଓ ଗୁରୁତର ଦାୟିତ୍ୱ ରହିଛି।

## ଆମେ କ'ଣ କରିପାରିବା ?

ପରିବେଶ କିଛି ଗହନ କଥା ନୁହେଁ। ବାଡ଼ିରେ ସଜନା ଗଛଟିଏ, ଚାଳକୁ କଖାରୁ ମନ୍ଦାଟିଏ ଦେବା ବି ପରିବେଶର କାମ। ଆମେ ଚାହିଁଲେ ଆମ ଚାରିପାଖରୁ କାଠ, ବାଉଁଶ, ପନିପରିବା ଆଦି ନିତିଦିନିଆଁ ଦରକାରୀ ଜିନିଷ ସବୁ ଅମଳ କରିପାରିବା। ଫଳରେ, ଯେଉଁସବୁ ଜାଗାରୁ ଏସବୁ ଜିନିଷ ଆସୁଛି ସେ ଜାଗାରେ ଚାପ ପଡ଼ିବ ନାହିଁ। ଆମେ ବଞ୍ଚିବାର ରୁଚି ବଦଳାଇ ଦେବା। ଯେତିକି ଦରକାର, ସେତିକି ହିଁ ପ୍ରକୃତିରୁ ଆହରଣ କରିବା। ପ୍ରକୃତିକୁ ନଷ୍ଟ କରୁଥିବା ତଥା ବାୟୁମଣ୍ଡଳକୁ ବିଷାକ୍ତ କରୁଥିବା ସୌଖୀନ ପଦାର୍ଥର ସଂଯତ ବ୍ୟବହାର କରିବା, ସାର, ଔଷଧର ବ୍ୟବହାର କମାଇବା ଓ ଏହାର ବିକଳ୍ପ ବ୍ୟବହାର କରିବା। ଆମେ ଏଭଳି ଭାବେ ଫସଲ ଫଳାଇବା, ଯାହା ମାଟିକୁ ସବୁଦିନ ବଳୁଆ କରି ରଖିବ। ଆମେ ଏଭଳି ଜିନିଷ କରିବା ନାହିଁ ଯାହା ବର୍ତ୍ତମାନ ବା ଭବିଷ୍ୟତରେ ପରିବେଶକୁ କ୍ଷତି ପହଞ୍ଚାଇବ। ଆମେ ପ୍ରକୃତି ଓ ପରିବେଶ ସମ୍ପର୍କରେ ସଚେତନ ହେବା। ପ୍ରକୃତି ଓ ପରିବେଶ ଉପରେ ଅତ୍ୟାଚାର ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା। ଆମେ ହସିବା, ଖେଳିବା ଲାଗି ସମୟ ବାହାର କରିବା।

# ଆମ ଭିତରେ ବାଘ ଲୁଚିଛି !

କିଏ ଜଣେ କହିଥିଲେ, "ମଣିଷ ଯେତେବେଳେ ବାଘ ପାଖରୁ ନିଜକୁ ବଞ୍ଚାଇବା ପାଇଁ ଅସହାୟ ମନେ କରୁଥିଲା ସେତେବେଳେ ତାର ବଞ୍ଚିବାର ସମ୍ଭାବନା ଥିଲା ବେଶୀ। କିନ୍ତୁ ଏବେ



ସେ ନିଜ ପାଖରୁ ନିଜକୁ ବଞ୍ଚାଇବାକୁ ଅସହାୟ ମନେ କରୁଛି।"

ପ୍ରକୃତରେ 'ମିଛୁଆ ରାଧୁଆ' ଗପରେ ବାଘ ଆଉ କେଉଁଠି ନୁହେଁ, ଆମ ଭିତରେ ହିଁ ଲୁଚି ରହିଛି। ଏହା ହେଉଛି ଆମର ଅତ୍ୟଧିକ ଲୋଭ, ଭୋଗ, ବିଳାସ ପ୍ରତି ମୋହ, ବିଶ୍ବର ଅନ୍ୟସବୁ ଜୀବନ ପ୍ରତି ଅବିଚାରର ପ୍ରତିରୂପ, ଯାହା ଆମକୁ ମରଣ ମୁହଁକୁ ଠେଲିନେବ। ଆମ ଆଗରେ ଦୁଇଟି ବାଟ। ଏ ବାଘକୁ ନିଜ ଭିତରୁ ଘଉଡ଼େଇ ଦେବାକୁ ହେବ ବା 'ବାଘ ଆଁ' ଭିତରେ ମୁଣ୍ଡ ଦେବାକୁ ପ୍ରସ୍ତୁତ ରହିବାକୁ ହେବ। ଆମେ ନିଶ୍ଚୟ ଚାହିଁବା ଏ ବାଘକୁ ନିଜ ଭିତରୁ ଦୂରେଇ ଦେବାକୁ। ଆସନ୍ତୁ, ଏ କାମ ନିଜ ପାଖରୁ, ନିଜ ପରିବାରରୁ, ନିଜ ଗାଁରୁ ଆରମ୍ଭ କରିବା।



Text : Sanjay Khatua, Illustration : Chhanda Acharya